# ବିଜ୍ଞାନ ଗୁପୁଗ













ଡକ୍ଟର ଯୋଗମାୟା ପଟ୍ଟନାୟକ

# ବିଜ୍ଞାନ କୁହୁକ

ଡକ୍ଟର ଯୋଗମାୟା ପଟ୍ଟନାୟକ

ଶଦଧା ପ୍ରକାଶନ
ବାଲୁବଜାର, କଟକ-୭୫୩୦୦୨

# ବିଜ୍ଞାନ କୁହୁକ

ଲେଖିକା :

**ଡା. ଯୋଗମାୟା ପଟ୍ଟନାୟକ**

ପ୍ରକାଶକ :

**ବିଦ୍ୟା ପ୍ରକାଶନ**
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୮୮

ମୁଦ୍ରଣ :

**ଶ୍ରୀ ନୀଳକଣ୍ଠ ପ୍ରେସ**
ବିଡ଼ାନାସୀ, କଟକ-୭୫୩୦୦୮

ମୂଲ୍ୟ : ଟ ୪-୫୦

# ବିଜ୍ଞାନ କୁହୁକ ଉପରେ ପଡେ

ବିଜ୍ଞାନ ମଣିଷକୁ ନେଇ କୋଉଠି ଥୋଇଲାଣି । ସେ କାଳ ପଖାଳ ଆଉ ନାହିଁ । ଗୋଟିଏ ଦିନ ଇଲେକ୍‌ଟ୍ରିକ୍ ବନ୍ଦ ହେଲେ ଲୋକେ ବାୟା । ଲଣ୍ଠନ, ଡିବିରି, ମହମବତୀ ଜାଳି ଘଣ୍ଟାଏ ରହିବାକୁ ନାରାଜ । ପାଣି ବନ୍ଦ, ଆଲୁଅ ବନ୍ଦ, ପବନ ମଧ୍ୟ ବନ୍ଦ ।

କିନ୍ତୁ ଲୋକେ ଆଗ ଅବସ୍ଥା ଭୁଲି ଗଲେଣି । ଚଳଣି, ରହଣି ଇତ୍ୟାଦି । ବିଜ୍ଞାନର କରାମତି ସହରର ଲୋକେ ଊଣା ଅଧିକେ ବୁଝିଲେଣି ।

ଆମ ଗାଁ ଗହଳରେ ଏବେ ବି କୁସଂସ୍କାର, ଅନ୍ଧ-ବିଶ୍ୱାସ ରହିଛି । ଆଧୁନିକ ବିଜ୍ଞାନ ସହର ଭିତରେ ଯେତେ ପ୍ରଭାବ ପକେଇଛି ଗାଁ ଗହଳରେ ସେତେ ନୁହେଁ । ପ୍ରଥମେ ହେଲା ଯାତାୟତର ଅସୁବିଧା । ତା ପରେ ଶିକ୍ଷା ଦୀକ୍ଷା ଅଜ୍ଞତା

ଗାଁରେ ବିଦ୍ୟୁତ ଶକ୍ତିର ଅଭାବ । ସହର ପିଲାଏ ବିଜ୍ଞାନ ବିଷୟରେ ଦେଖି, ଶୁଣି ସଚେତନ । କିନ୍ତୁ ଗାଁର

ପିଲାଏ ଓ ଲୋକମାନେ ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ଏବେ ବି ଜାବୁଡ଼ି ଧରିଛନ୍ତି ।

ଗାଁ ରେ ସାପ କାମୁଡ଼ିଲେ ଏବେ ବି ଗୁଣିଆ ଡାକି ସାପ ବିଷ ନିଉଡ଼ାଉଛନ୍ତି । ମହାଦେବଙ୍କ ପାଖରେ ପାଣି ଢାଳି ପକାଉଛନ୍ତି । ମହାଦେବଙ୍କୁ ଡାକି, ତାଙ୍କ ଉପରେ ନିର୍ଭର କରି କିନ୍ତୁ ବିନା ଚିକିତ୍ସାରେ ରୋଗୀକୁ ମାରନ୍ତି ।

ବିଜ୍ଞାନ କହୁ ନାହିଁ ଭୂତ, ପ୍ରେତ ନାହାନ୍ତି । ଏ ସବୁ ମିଛ; ଆଈମାର ପିଲାଙ୍କୁ ଭୁଲେଇବା କାହାଣୀ ।

ଆଜି କାଲି ସହର କଥା ଛାଡ଼ନ୍ତୁ । ଗାଁ ଗହଳରେ ଗଛ ଲଗାଇବା ପରିବର୍ତ୍ତେ କାଟିବାରେ ଲୋକ ଲାଗିଗଲେଣି । ପରିବେଶ ଦୂଷିତ କରଣ ଉପରେ ଲୋକଙ୍କର ଜ୍ଞାନ କମ । ତେଣୁ ସରଳ ଭାଷାରେ ବିଭିନ୍ନ ବିଷୟରେ, ବିଜ୍ଞାନ ବିଷୟରେ ଲେଖି, ଶୁଣେଇ ଲୋକଙ୍କୁ ସଚେତନ କରିବା ହେଉ ପ୍ରତ୍ୟେକ ବୈଜ୍ଞାନିକର କର୍ତ୍ତବ୍ୟ ।



# ବିଜ୍ଞାନ କୁହୁକ

## (ଲୋକଙ୍କ ପାଇଁ ବିଜ୍ଞାନ)

ହଇଲୋ ଆଈ, ତୁ ପରା କହୁଥିଲୁ ତୁ ପିଲାଦିନେ ଲଣ୍ଠନ ଦେଖି ନ ଥିଲୁ। ଛତା ଦେଖି ନଥିଲୁ। ସେଇଥି ପାଇଁ ସଞ୍ଜ ହେଲେ ଭାଟି କବାଟ ଦେଇ ପଖାଳ କଂସାଏ ଠୁଙ୍କି ଜଡ଼ା ତେଲ କି କରଞ୍ଜ ତେଲର ସଳିତା ଦେଇ ଶୋଇ ପଡ଼ୁଥିଲ ସବୁ।



କାହିଁକି, ମୁଁ କଣ ମିଛ କହୁଛି। ଆମ ବେଳ ସେମିତି ଥିଲା—ନେତ ଗେହ୍ଲା ବଡ଼ ନାତୁଣୀ—ଭୁହାଇ ଭୁହାଇ ପଚ୍ଛର

ଲାଗିଥାଏ, ଆଜ୍ଜେ ମହମ ବତୀ ରଖନ୍ତି କାହିଁକି ? ଆଉ ପଚାରୁଛୁ ସେସବୁ କିଛି ନ ଥିଲା ଆମବେଳେ ।

ଏବେ ତ ଭଲ ଭଲକା ଲଣ୍ଠନ, ଗ୍ୟାସ ଆଲୁଅ, ଆଉ ତୁମର ତ ଦିନ ରାତି ଇଲେକ୍‌ଟ୍ରିକ ବତୀ । ଆମ ବେଳେ କିଛି ଥିଲାନି । ସେମିତରେ ଆମେ ଭାଇଭଉଣୀ ଦଶ । ମୋ ମାଆର, ଖୁଡ଼ୀର, ବଡ଼ମା'ର ହେଇ ପନ୍ଦର, ପଚିଶି ପିଲା ସେ ଘରେ ଚଳୁଥିଲୁଟି । ଗୋଟାଏ ଖଞ୍ଜାରେ ମା, ଗୋଟାଏ ଖଞ୍ଜା । ଗୋଟାଏ ହାଣ୍ଡି । ବୋଉ, ଖୁଡ଼ୀ ଖାଉ ଖାଉ ବେଳ ବୁଡ଼େ । ଛୁଆଏ ଆମେ ଖାଇ ଦଉ ସିନା । ସେମାନେ ଅନେଇଥିବେ ମିଣିପଙ୍କୁ, ସେମାନେ ଆଇଲେ ଖାଇବେ ।

ଆଈର କଥା ଶୁଣି ନେତ, ସୀତା ହସି ହସି ବେଦମ୍ । ସୀତା ଏବେ ନର୍ସିଂ ପଢ଼ୁଛି କଟକରେ । ନେତ ଗାଁ ସ୍କୁଲରୁ ମାଇନର ପଢ଼ି ଘରେ । ଖବରକାଗଜ, ବହିପତ୍ର ଭାଇ ଭଉଣୀ ପଢ଼ାପଢ଼ି କରନ୍ତି । ଦେଶର ସବୁ ଖବର ରଖୁଛନ୍ତି । ନେତ କହିଲା, ତେବେ ତୋ ବାପ, ବଡ ବାପ, ଦାଦାଙ୍କ ଛୁଆ ମିଶିଲେ ଗୋଟିଏ ଗାଁ ହୋଇଯିବ । ହଇଲୋ କେମିତି ଏତେ ଲୋକ ଚଳୁଥିଲ ବା ?

ମୋ ବୋଉ ହେଇଥିଲେ ଘର ଦ୍ୱାର ଛାଡ଼ି ପଳେଇ ଥାଆନ୍ତା ।

ଆଉ ପାଳୁଆ ପାଟିରେ ପାଟିଏ ହସ ଭରି କହିଲା—ହଁ ଲୋ ଏବେ କ'ଣ ଗୋଟାଏ, ଦିଟାରେ ମୁଣ୍ଡ ଘୁରୁଛି ଯେ ବାପ—ପିଲା ସବୁ ତାଙ୍କୁ ପିତା ।

ଦୁଇ ଭଉଣୀ ଏକା ସାଙ୍ଗରେ କହିଲେ- ନାଇଁ ମା ବାଳୁଆ ପର ସାଲୁବାଲୁ ହେଉଥାଆନ୍ତେ । ଗଣ୍ଡାଏ ଖାଇବାକୁ ନଥାନ୍ତା, ଖଣ୍ଡେ ଭଲ ପିନ୍ଧିବାକୁ ନଥାନ୍ତା ?



ଆଉ ବଗୁରୀ ନାତୁଣୀ ଦିହିଁଙ୍କ କଥା ଶୁଣି ତାଜୁବ । ଆଲୋ କେଡ଼େ ଅଲାଜୁକୀ ହେଇଛ କଲୋ ? ହଁ, ଛତା କଥା କହିଲୁ ଯେ ତୁମେ ତ ଏବେ ସବୁ ସାହାବାଣୀ ହେଲଣି । ଡେଗ୍ ଭିତରେ ଛତା ପୂରେଇ ଗୁଳିଛ । କେତେ ରଙ୍ଗ ଲୋ ମା- ଛିଟ ଫୁଲ ସବୁ । ଆମ ବେଳେ କଣ ବା ଦରକାର ଥିଲା ? ବର୍ଷା

ଦନେ ପୋଖରୀ ଆଡ଼େ ଗଲାବେଳେ ପକ୍ଷିଆ କ ଝାଂପି ଆମର ଭଲ । ପିଲେ ତ ପକ୍ଷିଆ, ଝାଂପି ଦେଖି ନ ଥିଲେ ଅଣ୍ଡ ବୁଝେଇ ଲାଗିଲା ।

ସୀତା କହିଲା, ଅଣ୍ଡ ବର୍ଗ୍ଣୁରୀ କଣ କହିବ ମାଁ, ତା ବେଳେ ତ ଉଣା ଅଧିକ ବିଜ୍ଞାନ କରାମତି ଦେଖେଇଲାଣି । ଦେଖୁନୁ ଝାମ୍ପି କେଡ଼େ ସୁନ୍ଦର । ଆଦମ ମଣିଷ କଥା କହୁନୁ। ସେମାନେ ଲାଜ ବୋଲି କଣ ଜାଣି ନଥିଲେ । ଲଙ୍ଗଳା ରହୁଥିଲେ ବା ଗଛର ବକଳ ପିନ୍ଧୁଥିଲେ । କୋଉ ପନପରିବା ଥିଲା, କନ୍ଦା ଫଳ, ମୂଳ ଜଙ୍ଗଲର ଏମିତିକି କଞ୍ଚା ମାଉଁସ ବି ଖାଉଥିଲେ । ନିଆଁ କଥା ଜାଣିଥିଲେ ନାଁ, ଦରକାର କଣ ତା ଜାଣିଥିଲେ । ଆଜ ସିନା ବିଜ୍ଞାନ କୁହୁକ ପରି କଣ ନାଁ କଣ କରି ପକେଇଲାଣି ।

ନେତ୍ର ଟିକିଏ ମୁହଁ ଶୁଖେଇ କହିଲା—ହଁ ଲୋ ସୀତା, ତୁ ସିନା ପାଠ ପଢ଼ିଲୁ ବିଜ୍ଞାନ, ପୁଣି କଟକରେ ରହିଲୁ କେତେ କଣ ଜାଣିଲୁ ? ଆମେ ଏଇ ଗାଁରେ ଯାହା ହଉଛି ସେତିକି ଜାଣୁଛୁ । ଆଉ ଅଧିକ ବା କଣ ଜାଣିଛୁ ?

କଣ ଯେ ଦେଉଛ ତୁ କହୁ······ତୁ କଣ କଞ୍ଚା ପନପରିବା ଖ୍ୱେଉଛୁ ? କଞ୍ଚା ଖ୍ୱେବେଇବା ପରେ ମଣିଷ ପଥର ଘଷି ନିଆଁ ବାହାର କଲା । ନିଆଁର ବ୍ୟବହାର ଶିଖିଲା । ଅସ୍ତ୍ର, ଅସ୍ତ୍ର ବାରୁଦର ଦିଆସିଲି କାଠି । ଏବେ ତ

ଇଲେକଟ୍ରିକର ଚଳ ଲଗା, ଇଲେକ୍‌ଟ୍ରୋନକର ଚଳ ଲଗା—
ଦିନକୁ ଦିନ ନୂଆ ନୂଆ ଜିନିଷ ବାହାରୁଛି । ଯେମିତି ଲୋକେ



ଖୁସିରେ ରହିବେ । ଅଳ୍ପ ସମୟରେ, ଅଳ୍ପ ପରିଶ୍ରମରେ କାମ

ଭୁଲେଇବେ । ଧନ୍ୟ ଲୋ ସେମାନେ ଯେଉଁମାନେ ଆମ ପାଇଁ ଦିନ ରାତି ବସି, ଖିଆ ପିଆ ଭୁଲି ନୂଆ ନୂଆ କଥା ଆବିଷ୍କାର କରୁଛନ୍ତି ।

ଏ ଦି ଭଉଣୀ, ଆଣ୍ଠ ଗୋଟିଏ ଅଣ ନାତୁଣୀ କୋଳରେ ଧରି ବସି ଖୁସି ଗପ ହେଲାବେଳକୁ ଆଉ ଟାଁର ମାଉସୀ, ଖୁଡ଼ୀ, ନାନୀ ଅପା ସାଙ୍ଗସାଥୀ ଆସି ଜୁଟିଗଲେ । ଏମାନଙ୍କ ଅଗଣାଟା ପୂରା ଭର୍ତ୍ତି ।



ହାରି ଖୁଡ଼ୀ କହିଲେ—ସବୁ ଗପସପ ହେଉଥିଲା ବନ୍ଦ କଲ କାହିଁକି ? ଆମେ ଟିକିଏ ଶୁଣୁ ଥିଲୁ । ନାଇଁ ଖୁଡ଼ୀ ବନ୍ଦ କାହିଁକି କରିବୁ ଏଇ ଆମ ସୀତା ବିଜ୍ଞାନ ଏବେ କେତେ

ସୁବିଧା କଲାଣି ସେଇ ବିଷୟରେ କହୁଥିଲା । ଆଲୋ ସୀତା, ତୁନ କାହିଁ ହେଲୁ; କହୁନୁ । ଆମ ଘରେ ଆଜି ଗୋଟାଏ ଛୋଟକାଟିଆ ସତ୍ୟ ହୋଇଯାଉ ।

ସୀତା—ହଁ ମ ଖୁଡ଼ୀ ବିଜ୍ଞାନ କଣ ନ କରିଛି ନ କରୁଛି କହିଲ ? କିଛି ହେଲେ ନୂଆ ଜିନିଷ ବାହାରୁଛି । କେବେ କହିବାର ଶୁଣିନ ? ସେ ଯେତେବେଳେ ଛୁଆ ହୋଇଥିଲେ ତାଙ୍କ ଚଟଶାଳୀ ଯିବା ବୟସରେ ତାଙ୍କ ଗାଁକୁ ଗୋଟାଏ



ସାଇକେଲ ଆସିଥିଲା—ପ୍ରଥମ ଦେଖିଲେ ଗାଁର ଛୁଆଏ—ଶୂନ୍ ଗାଡ଼ି ଆସିଛି କହି ଯୋଉ ଭିଡ଼ ଲୋ ଛୁଆଙ୍କର ।

ଖାଇବା, ପିଇବା, ଶୋଇବା ରହିବା, ନାଇତ ବ୍ୟବହାର କରୁଥିବା ଜନିଷଠୁ ଆରମ୍ଭ କରି ସବୁ କିଛିର ରୂପ ନୂଆ ଢଙ୍ଗ । ଆମ ଗାଁ ଟା ଦେଖୁନ କେଡ଼େ ଛୋଟ ଗାଁଟି– ଆଗେ ଆମ ପିଲା ବେଳେ ପଞ୍ଚୁଦୋଳ ମେଳଣ ଦେଖିବାକୁ ଗଲା-ବେଳକୁ ଯିବାର କୋଉ ସୁବିଧା ଥିଲା ।

ଚଇତନ, ଗ୍ରାମ ହଳିଆ ହହେଁ ପଦ୍ମ ମଢ଼େ, ଦେଖିବାକୁ କାନ୍ଧରେ ବସେଇ ନେଉଥିଲେ ବଳ ବୁଢ଼ା ଦେଇ । ଏବେ ଦେଖୁନ ଶଗଡ଼ ରାସ୍ତା ହେଲା—ବସ୍ ଗାଁରେ ପଡ଼ିଲା—ଆଉ ଖରାଦିନେ ଦୁଆର ମୁହଁକୁ କାର ଆସିଯାଉଛି—ଇଲେକ୍‌ଟ୍ରିକ, ପାଣି ପମ୍ପ, ଟିଉବ୍-ଉଏଲ୍ । ନଈରେ ଲଞ୍ଚ—ଗାଁରେ ଇଲେକ୍‌ଟ୍ରିକ୍ ସହରଠୁ କୋଉ ଗୁଣରେ ଉଣା କହିଲ ଦେଖି । ସୁବିଧା ହେଉଛି କିନ୍ତୁ କାହା କରାମତି ଜାଣିନ ?

ହାର ଖୁଡ଼ୀ କହିଲେ—ହଁ ମ ସୀତା ତୁମ ଗୁନ ମାଉସୀଙ୍କ ଗାଁକୁ କୋଉ ସହର ଭଲା ସରି ହେବ । ମୁଁ ଏବେ ଯାଇଥିଲି ଯେ ସେଠୁ ଆସିବାକୁ ମୋଟେଉପରେ ଇଚ୍ଛା ହେଉ ନଥିଲା । ଶୋଇବା ଘରକୁ ଲାଗି ଗାଧୁଆ ଘର, ପାଇଖାନା । ଗାଧୁଆ ଘରେ କଳ ପୁଣି କଳରେ କଣ ଗୋଟିଏ ଲଗେଇଚନ୍ତି ଯେ ଖୋଲି ଦେଲେ ବରଷା ପରି ପାଣି ଭସ୍ ଭସ୍ ।

ଆଉଲୋ ମା ମୁଁ ଏତେ କଥା ଜାଣେନି ଛ । ହୋସ ନାଇଁ କଳ ଖୋଲିଦେଲି, ଗୋଟା ପଣେ ଚାଲନ୍ତ ବୁଢ଼ି ଆଣିଏ । ଗୁନ ଭ ହସି ହସି ଲୁଗାରେ ପିସାବ କରି ପକେଇଲେ । କହିଲେ—ଅପା ତମେ କଣ କେତେବେଳେ ଖୋଲି ପକଉଛ ଯେ ପିଲାଏ ଟାପରା କରୁଛନ୍ତି ।

ହଁ ମ ଖୁଡ଼ୀ, ଦେଖୁନ ତୁମେ, ବୋଉ, ନାନୀ ସମସ୍ତେ କାଠ, ରସି; ନଡ଼ିଆ ବାହୁଙ୍ଗା ଚୁଲିକୁ ପେଲି ପେଲି ବେଦମ



ହେଉଛନ୍ତି ଧୂଆଁରେ । ଯୋଉ ଧୂଆଁ ଏ ଓଦାଳିଆ କାଠରୁ ଫଙ୍କୁନଳାରେ ଫୁଙ୍କି ଫୁଙ୍କି ଚେଁମେ ସବୁ ବେଦମ । ଗୁନ ମାଉସୀ

ଘରେ ଦେଖିଥିବ ଅଧ ଘଣ୍ଟାରେ ଶ୍ରେଷ୍ଠେଇ ସାର ମହିଳା ସମିତିରେ କେତେ କାମ କରି ପକାଏ । ଏବେ ବଡ଼ି, ପାମ୍ପଡ଼, ଆଚ୍ଚାର କରି ବିକୁଛନ୍ତି । ସେଥିରେ କେତେ ଲୋକଙ୍କୁ ଚାକରୀ ଦେଇଛନ୍ତି । ଲାଭ ପଇସା ସବୁ ବ୍ୟାଙ୍କରେ ରଖୁଛନ୍ତି । ଯୋଉଠି ବଢ଼ି ହେବ, ମରୁଡ଼ି ହେବ, ଘରପୋଡ଼ି ହେବ ଜିନିଷପତ୍ର ନେଇ ସାହାଯ୍ୟ କରିବାକୁ ଯାଉଛନ୍ତି । ଯା ହଉ, ପର ଉପକାର ତ କରୁଛନ୍ତି ।

ଗୁନି ମାଉସୀ ଏଥର ମତେ କହିଲା –ଆଲୋ ସୀତା ଦେଇ ଖାଲି ସମୟଗୁଡ଼ା ଲୋକସାନ କରି ଦେଉଛୁ । ଦିନ ରାତି ଶ୍ରେଷ୍ଠେଇ ଆଉ ଖାଇବା, ଖୁଆଇବା ଛଡ଼ା ଆଉ କଣ କରୁଛୁ କହିଲୁ ? ଖାଲି ପ୍ରକାର, ପ୍ରକାର ରାନ୍ଧି ତେଲ, ମସଲା ଭର୍ତ୍ତି କରି ରୋଗ କିଣୁଛୁ । ମୁଁ ଯୋଉ ପ୍ରେସରକୁକର ଦେଇଥିଲି ତାକୁ କଣ ଫୁଲ ଚନ୍ଦନ ଦେଇ ପୂଜୁଛୁ କିଲୋ ? ମୋ ମୁହଁ ଲାଜରେ ଜଳିଗଲା ଲୋ ଦେଈ ।

ହଁ ମ ମାଉସୀ ଦେବା ପ୍ରେସରକୁକର ବୋଉ ଫିଟେଇନି । ତା ଶବ୍ଦକୁ ବୋଉ ଡରେ । ମତେ ଟିକେ ବଢେଇ ଦେବୁନି ତା ବ୍ୟବହାର । ଶ୍ରେଷ୍ଠେଇ ଅଧଘଣ୍ଟାରେ ସରିବ । ଭାଲି ତ ଆମର ଘଣ୍ଟାଏ ବସୁଛୁ—ତଥାପି ବୋଉ ମଙ୍ଗୁନି । ଆଜ ମୁଁ ରାନ୍ଧିବି—ଦେଖିବୁ କେତେ କମ୍ ସମୟରେ

ସୁଆଦିଆ ରନ୍ଧା ହେବ । କମ୍ ଜାଳ ଖର୍ଚ୍ଚ । ସମୟ କମ୍— ଦେଖିବୁ ବିଜ୍ଞାନ କୁହୁକ ଆମର ଘରେ ।



ପ୍ରେସର କୁକର ସୁବିଧା ଦେଖି ସମସ୍ତେ ଛକ ପକ ହେଲେ କେମିତି ଗୋଟିଏ କିଣି ପକେଇବେ ।

ହରି ଖୁଡ଼ୀ କହିଲେ - ଗୁନିଙ୍କ ଘରେ ଯୋଉଁ ଚୁଲା ଲୋ ହାତ ଗୋଡ଼ରେ ବୋଷେଇ ଲାଗିବନି । ସୀତା କହିଲା— ଗ୍ୟାସ ଚୁଲି । ସେଠି ତାଙ୍କର ପାଖରେ ଗ୍ୟାସ ଡିପୋ—ଗ୍ୟାସ୍ ସରିଲେ ଖାଲି ସିଲିଣ୍ଡର ଫେରାଇ ପୁଣି ନୂଆ ଦେବେ । ପଇସା ଖର୍ଚ୍ଚ ହେଉ ପଛେ ଯୋଉ ସୁବିଧା— ସୀତା କହିଲା, ସବୁ ବିଜ୍ଞାନର କରାମତି ।

ହଁ ଖାଇବା କଥା ଶୁଣ—ଲୋକମାନେ କେମିତି ସୁବିଧାରେ, ଶସ୍ତାରେ ଖାଇବା ଜିନିଷ ଖାଇବେ, ଖାଇଲେ ତାଙ୍କ ଦେହ ସୁସ୍ଥ ରହିବ। ସେ ବିଷୟରେ ଲୋକଙ୍କୁ ବୁଝାଉଛନ୍ତି। ଲୋକଙ୍କ ମନରେ ଗୁଡ଼ାଏ ଭୁଲ ଧାରଣା ବସା କରିଛି। ଅମୁକ ଜିନିଷ ଖାଇଲେ ସର୍ଦ୍ଦିହେବ - ଦହି ଦେହକୁ ଅହିତ—ପନିପରିବା ଖାଇବା ଯାହା ଘାସ ଖାଇବା ତାହା।



ଖାଲି ମାଛ, ମାଂସ, ଅଣ୍ଡା, ଦୁଧ ହେଲା ଖାଦ୍ୟ। ଆଉ ଆମେ ତ ଗରିବ। ଏସବୁ କଣ ଖାଇ ପାରିବା ?

ବୁଲି ଦେଇ କହିଲା—କାହିଁକି ବା ସେ କଥା ଶୁଣୁଛୁ ଆମେ ତ ଶାଗ, ପଖାଳର ମୁଣ୍ଡ । ଶୁଣି କି ଲାଭ ? ଯା ହେଉ ଭଲ କଥାଟିଏ କହିଲୁ ? ସୀତା କହିଲା —ଏ କଥା ମୋ ମୁଣ୍ଡକୁ ଏ ଯାଏ ପଶି ନ ଥିଲା । ଜାଣିଛୁ ନା ଶାଗ, ପଖାଳରେ ଯାହା ଅଛି, ମାଛ ମାଉଁସରେ ବା ନାହିଁ ଲୋ ।

ଏବେ ପରା ବୈଜ୍ଞାନିକମାନେ କହିଲେଣି ଶାଗରେ ପୁଷ୍ଟିସାର ବେଶ୍ ଅଛି । ତା ଛଡ଼ା ଧାତୁସାର ଓ ଜୀବସାର ମଧ୍ୟ ଯଥେଷ୍ଟ ପରିମାଣରେ ଅଛି । ଆଉ କାହିଁକି କହୁଛୁ ଲୋ ବୁଲି ଦେଇ ମାଛ, ମାଉଁସ ହେଲେ ଦେହକୁ କ୍ଷତି କରିବ । ଶାଗରେ ପରା ଖାଡ଼ା ପରିଷ୍କାର ହେବ । ଆଉ ଯୋଉ ତନ୍ତୁ ଅଛି, କର୍କଟ ବେମାରୀ ହେବନି । ଯେତେ ଯାହା କହ ଗୁଣ, ଛଅ ଭଜା ଥାଉ ପଛେ ପଡ଼ୁଶୀଙ୍କୁ ଆଣିକୁ ମୋର ସେ କଣ ଖାଏ । ଅନାବନା ଶାଗ ଭଜାରୁ ପୂଳାଏ କଞ୍ଚା ରସୁଣ ପାଞ୍ଚ ଛଅ କୋଳି ଆଉ କାଠିମରି ଖୁବ ପଖାଳ । ଦେଖ କେମିତି କଆନ ଅଛି ।

ଆଉ ବୁଢ଼ୀର ମନ କୁଣ୍ଢେ ମୋଟ ହେଲା । ଗରବରେ ଫୁଲି ଫୁଲି ଗାଇ ବସିଲା—

ଶାଗ, ପଖାଳ ଯେ ନଇତ ଖାଏ
ତା ଜଉଡ଼ିକ ବଇଦ ନାଏ ?

ଆଲୋ ବଡ ଲୋକ ଦେଖେଇ ଏ ଟୋକୀଏ ପାଉଁରୁଟି ସକାଳୁ ଦ ପଟ ଖାଇ ଧୁଡ଼ ଧୁଡ଼ ।

ବୁଲି ଦେଇ ଅଣ୍ଟାରୁ ପିତଳ ଡବାଟିଏ ଖୋଲି ଟିପେ ଗୁଡାଖୁ ନେଇ ସେଇଠି ଜାକ ଦେଲା—ଏ ଅଭ୍ୟାସ ତାର କୋଉ ଦିନରୁ । ସୀତା କି ସହଜେ ଛାଡ଼େ ! କହିଲା ହଇଲୋ ଇଏ କଣ ବିଷ କାହିଁକି ପାଟିରେ ପୂରେଇଛୁ ? କଣ ବିଷ କଟକର ନାମ କରା ଗୁଡାଖୁ । ସୀତା କହିଲା—ଶୁଣୁନ ଗୁଣ୍ଡି ଗୁଡାଖୁ, ଦୋକ୍ତା, ବଡ଼ି, ପିକା, ସିଗାରେଟ ସବୁ କର୍କଟ ବେମାରୀର ମୂଳ । ଜାଣି ଜାଣି କାହିଁକି ରୋଗ କଣୁଛୁ ଲୋ ।

ବୁଲି ଗୁଡ଼ାଖୁ ଉପରେ ଏତେ ଜୋର ନ ଦେଇ ବଡ଼ି ଉପରେ ଜୋର ଦେଲା । ମନଟା ଶୁଖେଇ ଦେଲା । ତା ବର ସନଆ ସାରା ଦିନ ଖଣ୍ଡେ ମୁହଁରେ ପୂରେଇ ଥିବ । ଶୁଣି ମନଟା ଗୋଳେଇ ଘାଣ୍ଟି ହେଲା । କହିଲା—ସୀତାଲୋ, ଟିକଏ ତୁ ତୋ ଭାଇକୁ ବୁଝାଉନୁ—ଅନବରତ ଟାଣି ଲାଗିଛୁ

ସେଥିରେ ଯୋଉ କାଣ । ମା କାଳିକା ଭରସା । ଆଉ କିଛି ମୋ ହାତରେ ନାହିଁ ।

ସୀତା କହିଲା କାଣିଛ ନରମିଷ ମାଉଁସ ଏବେ ବାହାରିଛି । ସୋମବାର ହସି ହସି ଗଡ଼ିଗଲା । ଏ ଦେଇ ଆମର କେତେ ଟାପରା କରୁଛି ଦେଖ । ହଇଲୋ ମାଉଁସ ପୁଣି ନରମିଷ—ଆଉ କେହି ଜଣେ ମିଳଲେନି ଏଇ ମା, ମାଉସୀ, ଖୁଡ଼ୀ, ନାନୀ ଛୋଡ଼ି ଟାପରା ।

ନାହିଁ ହୋ ସୋମବାରୀ ଅପା ଟାପରା କାହିଁକି କରିବ । ଏଇଟା ପରା ଆମର ଗୋଟାଏ ଚର୍ଚ୍ଚା ଚାଲିଛି । ସୋୟାବିନରୁ ବୁଆର ବଡ଼ି, ଠିକ୍ ରାନ୍ଧିଲେ ମାଉଁସ ପରି ଲାଗିବ । ଗୁଣ ମାଉଁସଠୁ ଭଲ । ସୋୟାବିନ୍‌ର କ୍ଷୀର ମଧ୍ୟ ପିଲାଙ୍କ ପାଇଁ ଉପଯୋଗୀ । ସବୁଲୋ ମା ଏଇ ବିଜ୍ଞାନର କୁହୁକ ବିଦ୍ୟା । ଦେଖୁନ ଫଳକୁ ମାଉଁସ ପରି ସୁଆଦିଆ କରିଦେଉଛି ।

ଆଲୋ ଶୁଣ······ଶାଗ ଖାଇବ ସଜନା
ଛୁଇଁ ଖାଇବ ମୁଗୁନା ।

ସେଇ ସଜନା, ମୁଗୁନା ଏତ୍ତିକ ଉପକାରୀ ଲୋ କଣ କହିବ—ସଜନା ଶାଗରେ ସବୁଠୁ ବେଶୀ ଲୁହା ଅଛି । ଆଉ ଚନାବାଦାମ ଖାଇଲେ ପେଟ କଣ ହେବ ବୋଲି ଆମେ ଛୁଆଁଙ୍କୁ ପାଟିକରୁ । ସେଇ ଚନାବାଦାମ ଲୋ ମୁଠାଏ ଖାଇଲେ ମାଛ, ମାଉଁସ ଖାଇଲା ପରି । ପୁରୁଣି ଶାଗ ଖୁବ ଭଲ ଦେହ ପାଇଁ । ତମେ ସବୁ କିଛି ନ ବୁଝି ଆମେ ଗରିବ, କୋଉଠୁ କଣ ଖାଇବୁ ? ଗହମ ରୁଟି ଭଲ ଲୋ । ଆଉ ଗଜା ମୁଗ, ଗଜାବୁଟ, ଗୁଡ଼ ଖୁବ୍ ବଳକାରକ ।

ଦେଖୁନୁ ଆମର ଏ ଜଙ୍ଗଲ ମଫସଲରେ ଗର୍ଭବତୀ-ମାନଙ୍କୁ କେମିତି ଟିଟାନସ୍ ଇଞ୍ଜେକ୍‌ସନ ଦେଉଛନ୍ତି । ଖାଇବା ବିଷୟରେ ବୁଝଉଛନ୍ତି । ରକ୍ତହେବା ପାଇଁ ବଟିକା ଦେଉଛନ୍ତି । ଗର୍ଭ ଅବସ୍ଥାରେ ତିନଟି ଟିଟାନସ୍ ଇଞ୍ଜେକସନ ନେଲେ ମା’ ନିରାପଦ, ଛୁଆ ନିରାପଦ । ଏ ସବୁ କଣ ଥିଲା । ଚିକିତ୍ସା କ୍ଷେତ୍ରରେ କେତେ ଉନ୍ନତ ହେଲାଣି—କହିଲୁ ଦେଖି ?

ନେତ କହିଲା—ଆମ ସୀତା କଟକରେ ରହି ପଢ଼ି କେତେ କଥା ଜାଣିଲାଣି । ଆମେ କୋଉଠୁ ଏତେ କଥା ଜାଣିବା ? ମୁଁ ତ ପିଲାକାଳରୁ ବେମାରୀ ଉପରେ ବେମାରୀ ପଡ଼ିଲି । ବୋଉ କହେ ହୁପିଂକାଶ ମତେ ଏତେ ସରୁ କଲା ।

ସେଇ ଯେ ହେଲା ତା ପରଠୁ ମତେ ଟିକାକରେ ସର୍ଦ୍ଦି, କାଶ, ଖାଇଲେ ଦେହରେ ଲାଗେନ । ଏବେ ଦେଖୁନ ଆମ ଗାଁର ଟିକି ଟିକି ଛୁଆଁଙ୍କୁ ସବୁ ଇଞ୍ଜେକ୍‌ସନ ଦେଇ ଦେଲେଣି । ଟିଟାନସ୍, ଡିପ୍‌ଥେରିଆ, ହୁପିଂକାଶ ପୁଣି ପୋଲିଓ ଔଷଧ । ସେମାନେ କଣ ଆମପରି ରୋଗ ଭୋଗିବେ । ତାଙ୍କ ମା'ମାନେ ଛୁଆଁଙ୍କ ପାଇଁ ନିଧଡ଼କ । ବସନ୍ତ ତ ଆଉ ନାହିଁ କହିଲେ



ଚଳେ । ପୃଥିବୀରୁ ନପାରି ହେଲା । ଧନ୍ୟ ଗୋବିନ୍ଦ ଟୀକା— ଦେଖିଲେ ବିଜ୍ଞାନର କରାମତି ।

ହଁ ଲୋ ଆଗେ ରୋଗରେ ପୋକ ମାଛି ପରି ମରୁଥିଲେ । କିଏ କାହାକୁ ଚ଼ କରିବାକୁ ରହୁ ନଥିଲେ । ହଇଜା ହେଲା ତ ଗାଁ ସଫା । ଏବେ ପିଇବା ପାଣିରେ ନଜର, ବିଶୋଧନ ହେଉଛି, କୋଉଠି କାଁ ଭି ଦେଖାଗଲା ତ ସାରା ଗାଁ ପ୍ରତିଷେଧକ ଇଂଜେକସନ ଦେଲେ । ଆଉ ରୋଗ କେମିତି ମାଡ଼ି ବସିବ କହିଲୁ ? ଖାଲି ସେତିକି ବିଜ୍ଞାନ ତା କୁହୁକ ବଳରେ ଆମର ଏଇ ରୋଗ ବିଷୟରେ ଯୋଉ ଅନ୍ଧ-ବିଶ୍ୱାସ ଥିଲା ସବୁ ଦୂର କଲାଣି ।

ଜର ହେଲେ ଛୁଆଙ୍କର ବାଛ ମାରେ । ବଡ଼ଙ୍କର ବି ଜର ବେଶୀ ଉଠିଲେ ମୁଣ୍ଡ ଭିତର କଣ ହେଇଯାଏ । ଏବେ ତ ଜରମପା ଯନ୍ତ୍ର (ଥର୍ମୋମିଟର) ସାଙ୍ଗେ ସାଙ୍ଗେ ଜର ମାପି ମୁଣ୍ଡରେ ପାଣି ପଟି ଦେଉଛନ୍ତି । ମୁଣ୍ଡ ଧୋଇ ପକଉଛନ୍ତି । ବେଶୀ ଉଠି ଖରାପ ହେବାଯାଏ ରହୁଛି କି ?

ଜୀବନ ରକ୍ଷା କରିବା ପରି ବହୁ ଔଷଧ ବାହାରିଲାଣି —ପେନିସିଲିନ୍, ଆମ୍ପିସିଲିନ୍, ଟେଟ୍ରାସାଇକ୍ଲିନ୍ ଏମିତି କେତେ କଣ ! କିଛି ଗୋଟାଏ ହେଇ ବିଷାଣ ହେଲେ ଏଇ ଔଷଧ କେତେ ସୁବିଧା କରୁଛି ।

ନେତି କହିଲା—ସୀତା ଆମର ଦୁଇଟି ବର୍ଷ ହେଇନ ନର୍ସ ଟ୍ରେନିଂ ନବାକୁ ଯାଇଛି । କେତେ ଜାଣିଲାଣି ଦେଖିଲ ?

ସେ ଗଲାବେଳେ ସାନ୍ତ୍ଵ ଗୋଟାଏ ଆମ ଘର ବଗିଚାରେ ଥିଲେ । ବାପା ଏ ଘରକଥା ଶୁଣି କହୁଥିଲେ ଥାଉ, ଆଉ ଅନ୍ୟ କିଛି ପଡ଼ୁ, କିନ୍ତୁ ମୋ ବୋଉ ଆଉ ସୀତା ନଜେ ଜଡ ଜଣ ଗଲାନା ।

ଏଇ କଥା ପଦକରେ ସଭିଙ୍କର ମୁହଁ କଳଥା । ଗୋଲାପ ନାନୀ କହୁଥା—ସତ ମଁ ଏ ବେମାରୀ ଯୋଗୁ ସବୁବୋଉ ଭୟ ଥିଲା ଏଇ ବଡ଼ରୋଗ ଆଉ ରାଜଯକ୍ଷ୍ମା-ଏତକ ଶୁଣୁ ଶୁଣୁ ନେଡ ସୀତା ହସି ହସି ଗଡ଼ିଗଲେ । ପ୍ରାୟ ଶହେବର୍ଷ ତଳର କଥା—ଆରସାହିର ଖୁଡ଼ୀଙ୍କ ବାଉଳେ ଏମାନଙ୍କର ଓଳିଆ ଗାଈ ବଉଳୀ ପଶି ଖଡ଼ା, କୋଶଳା କଅଁରୀ ନଷ୍ଟ କରିଦେଇଥିଲା ବୋଲି ଯୋଉ ସମା—ତୁମକୁ ବଡ଼ରୋଗ କୁଷ୍ଠ ହେଉ, ଟି. ବି. ହେଉ ଇତ୍ୟାଦି···

ଆଗେ ଯେନା ଏ ରୋଗ ହେଲେ ଘରେ କାନ୍ଦ, ବୋବାଳ ପଡ଼ୁଥିଲା । କାହିଁକି ନାଁ ଆଜି ସେଥିରେ ବଂଶନାଶ କଷ୍ଟ । ଏବେ ତ ଆଉ ସେ ଭୟ ନାହିଁ । ସେଇ କଥା ଶୁଣି ବୋଉର ଯୋଉ କାନ୍ଦୁନା, ଅଭିଶାପରୁ ତା ଘରେ ଏ ରୋଗ ପଶିଯିବ ବୋଲି । ଯା ହେଉ ବିଜ୍ଞାନ କରାମତି ଆଜି ଆମ ମୁହଁରେ ହସ । ଏମିତିକି କର୍କଟ ବେମାରୀ ଆୟତ୍ତାଧୀନ ହେଲାଣି ।

ଏବେ ଦେଖୁନ ଗାଡ଼ି ମଟର, ସ୍କୁଟର ଯେତେ, ରାସ୍ତା ଦୁର୍ଘଟଣା ସେତେ । କାହାର ହାତ ଭାଙ୍ଗି ଗଲାଣି ତ କାହାର

ଗୋଡ଼ ଭାଙ୍ଗିଲାଣି । ଏବେ ତ ଏକସ୍‌ରେ ସାଙ୍ଗେ ସାଙ୍ଗେ । ହାଡ଼ ଭାଙ୍ଗିଛି କି ନାହିଁ, ବଙ୍କିଚ କି ଖସିଛି ଜାଣି ଚିକିତ୍ସା ହେଉଛି ।

ଆଗବେଳରେ ହାଡ଼, ଗୋଡ଼ ଭାଙ୍ଗୁଥିଲେ ସେମିତ ଅଖାଡ଼ାଆରେ ଯୋଡ଼ ହୋଇ କେମ୍ପା, କୁକାରେ ବଂଚ ରହୁଥିଲେ । ମନକୁ ମନ ଚେର ମୂଳରେ ଯାହା ହେଉଥିଲା—ଛାଡ଼ ଆମେ ଏବେ ଯାଇ କୋଉଠି ପହଂଚଲେଣି —ଢନକୁ ଢନଲୋ ମା କେତେ କଣ ଚିକିତ୍ସା ବାହାରୁଛି, ମେସିନ୍ ବାହାରୁଛି ।

ଆଲୋ ହୃଦୟରେ କିଛି ଦୋଷ ଥିଲେ ମେସିନ୍ ସାଙ୍ଗେ ସାଙ୍ଗେ ଜଣେଇ ଦେଉଛି କାଗଜରେ । ତା ପରେ ଚିକିତ୍ସା କର ଭଲ । ଛାତିରେ ବାଟେର ଦଅ ମେସିନ୍ ଲାଗି କାମ ଚାଲିଲାଣି । ମୁଣ୍ଡ ଭିତର, ପେଟ ଭିତର ସନ୍ଧି, କନ୍ଦିରେ କୋଉଠି କଣ ବେମାରୀ ମେସିନ୍‌ରେ ସବୁ ଜାଣୁଛନ୍ତି । ଖାଲି ଏ ବାରତା ଗାଁ ଗହଳରେ ଆମର ମାଇପି ମହଲରେ ପଶିନି ।

ସୁନା ନାକ ଗୁଣାକୁ ହଲେଇ କହିଲା —ଛାଡ଼ଲୋ,ଆମେ କୋଉ ଡାକ୍ତର ହଉଛେ କି ହେଇଛେ ନାଁ ସୀତା ଦେଈ ପର ନରସ ପଢ଼ୁଛେ ଏତେ ମେସିନ୍ ବାରତା ମନେରଖିବା । ତେବେ ଦେଈ ଯାହା କହୁଛି ଶୁଣି ଭାଜୁବ ଲାଗୁଛି ସାଆନ୍ତାଣୀ ।

ସେଡ଼କବେଳେ ସୀତା ଅସିଛି ଶୁଣି ଆଉ ସାହର । ଆଖୁ ବଲ୍ଲୀରେ ମଷ୍ଟ୍ରାଣୀ ଗୃକରୀ କରେ ଆସି ପହଞ୍ଚି ଗଲା । କଣ କଲେ ଆଜ ଅଗଣାକୁ ସରଗରମ କର ଜମେଇଛ ? ଗୁରୁଜନମାନଙ୍କୁ ଗୋଟାଏ ବଡ଼ ଓଳଗି ହୋଇ ବସି ପଡ଼ିଲା ।

ସୀତା କହିଲା—କାଲି ତୋ ଚଠି ଆମେ ପାଇଲୁ, ତୁ ଆଜ ଆସି ଗାଁରେ । ତୋର ତ ଆସିବାର ନଥିଲା କେମିତି ଏତେ ଶୀଘ୍ର ଆସିଲୁ ? ଶ୍ରୁଭଙ୍କଠ୍ ଭୁବନେଶ୍ୱରରୁ ଫୋନ ପାଇଲି କଟକରେ ଗୋଟାଏ ଇଣ୍ଟରଭିଉ ମୋର ଅଛି । ସେଇଥିପାଇଁ ଡେରୀ ହେବ କାଲେ ଉଡ଼ାଜାହାଜରେ ଚାଲି ଆସିଲି । ମୁଁ ତ କେବେ ଉଡ଼ାଜାହାଜରେ ଚଢ଼ି ନଥିଲି । ଏଡ଼େ ସୁବିଧା ଲୋ



—ଦୁଇ ଘଣ୍ଟାରେ ପହଞ୍ଚିଗଲି ଭୁବନେଶ୍ୱରରେ । ଦଲ୍ଲୀରୁ ଭୁବନେଶ୍ୱର ଆସିଲା ପରି ଲାଗିଲାନି । ପଇସା ପଡ଼ୁ ପଛକେ ମୋ କାମ ତ ସୁ ରୁଖୁରୁରେ ହେଲା ।

ନେତ କହିଲା, ଆଉ ତୁ କଉ ଭାଗ୍ୟବତୀ । ଉଡ଼ାଜାହାଜ ଆକାଶରେ ଉଡ଼ିବା ଦେଖିଛୁ, ବସିବା କଥା ଛାଡ଼ । ଭୁବନେଶ୍ୱର ଯାଇ ଉଡ଼ାଜାହାଜ ପଡ଼ିଆ ଆଉ ଉଡ଼ାଜାହାଜ ଦେଖିବାର ସୁଯୋଗ ଏ ଯାଏଁ ଟିକଏ ମିଳନି । ଯା ହେଉ ଦେଖ ଏତେ ବାଟ ବିଜ୍ଞାନ ଯୋଗୁ ସିନା ଘଣ୍ଟାକରେ ତୁ ପହଞ୍ଚିଗଲୁ ।

ସୀତା କହିଲା—ଉଡ଼ାଜାହାଜ କଥା ଛାଡ଼—ଆଗେ କଣ ଟ୍ରେନ୍ ଥିଲା । ଲୋକେ ବଳଦ ଗାଡ଼ିରେ ନ ହେଲେ



ଚାଲିକରି ଯାଉଥିଲେ । ଆଉ ଯୋଉଠିକି ଯିବା କଥା, ସେଠି

ପହଞ୍ଚିଲେ ବେଳକୁ ଗଣ୍ଡ ଲି ବ ହରଣଙ୍କଲ । ଡକାଯୁକ୍ତ ଜୀବଜନ୍ତୁ ସବୁ ଦାଉରୁ ରକ୍ଷା ମିଳଲେ ପହଞ୍ଚିବା କଥା । ଦେଖି ବିଜ୍ଞାନ ଭଲି ଆମର କଣ ନ କରିଛି ? ଆକାଶରେ ଉଡ଼ିପାରୁଛେ, ସମୁଦ୍ରରେ ବୁଡ଼ି ପାରୁଛେ, ଜାହାଜରେ ଯାଇ-ପାରୁଛେ ? ଆଗର ଯିବା, ଆସିବା, ଚାଲିଚଳଣି ଏବେର ଲୁଆଁଙ୍କୁ ପରୀଗ୍ରାଇକର ଗପ ପରି ଲାଗିବ ଲୋ । କିଏ କଣ ପରଖେ ଯିବେ ?

ଗାଁର, ମାଇପି ସଭା ନେତା, ସୀତାଙ୍କ ଅଗଣାରେ ବେଶ୍ ଜମିଗଲା । ମନ୍ଦୋଦରୀ ମାଉସୀ, ଦ୍ରୌପଦୀ ନାନୀ, ଲତା ଅପା, ସୁନ୍ଦରୀ ଅପା ଗାଁ ମହିଳା ସମିତିର କର୍ମକର୍ତ୍ତା । ନେତାବୋଉ ବେଶ୍ ପାନଡାଲା ଖୋଲି ପାନ ଘୁଞ୍ଚିବାରେ ବ୍ୟସ୍ତ । ସମସ୍ତେ ଏକା ସାଙ୍ଗରେ କହିଲେ ବିଜ୍ଞାନ କଣ ନ କରିଛି କିଲୋ ?

ସୁନ୍ଦରୀ ଅପା, ଲତା ଅପା, କୁଟୁମ୍ବର ଦୁଇ ଭଉଣୀ । ସେମାନେ ପିଲାଦିନେ ଶୁଣିଥିଲେ କେଉଁ ଝିଅରୁ ତାଙ୍କର ଆଈ, ଗୋସିମାଁ, ସାଙ୍ଗସାଥୀ ହୋଇ ଖୋଳ, ସହର ଜଣ ମେଣି ଚାଲି, ଚାଲି ପୁରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ ଆସିଥିଲେ । ବାଟରେ କଣ ହେଲା କେଜାଣି ଜରରେ ପଡ଼ି ଗୋସିମାଁ ଗଲେ । ପୁରୀ କାଳିଆକୁ ଦେଖି ପାରିଲେ ନାହିଁ । ସେହି ଦିନୁ ତାଙ୍କ ବାପ, ଦାଦାଙ୍କର କାଳିଆ ଉପରେ ଭାରି ଅଭିମାନ । ପୁରୀ ମନ୍ଦିରରେ ପଶୁ ପଶୁ ପତିତପାବନଙ୍କ ପାଖରେ ସବୁ ଦୁଃଖଗୁଡା ଲୁହରେ ଧୋଇ ଦିଅନ୍ତି । "ଯା, ମୁଁ ଭିଏ କୁଆଡ଼େ ପତିତପାବନ, ବୋଉ

ଅମର ଦେଖିପାରନ୍ତିନ କେତେ ଆଶା ରଖି ।" ଏବେ ପୃଥି-
କଣ ସାରା ପୃଥିବୀ କେଡ଼ିକ ଛୋଟ ।



ହେଇ ପରା ଫୋନ ବୁଲେଇଲେ ଆମେରିକାରେ ଥିବା ପୁଅ, ଝିଅଙ୍କ ସହିତ କେଡ଼େ ସୁନ୍ଦର କଥା ହେଇ ହେବ। ଆଗ ପରି ବିଦେଶ କିଏ ଗଲେ ଆଉ ବାଧୁନି। ଆଗେ ପୁଅ, ଝିଅ ବିଲାତ, ଆମେରିକା ଯିବା କଥା ଶୁଣିଲେ ମା, ବାପ ବନ୍ଧୁ, ବାନ୍ଧବ ସମସ୍ତଙ୍କର ମୁଣ୍ଡ କୋଡ଼ା। ଲୁହ, ସିଙ୍ଘାଣୀ ଛୁଟୁଥିଲା ।

କଥାରେ ପରା ଅଛି ସାତ ସମୁଦର, ତେର ନଈ ପାରି । ଏବେ ତ ବିଜ୍ଞାନ ଏମିତି ସୁବିଧା ଖଞ୍ଜିଛି

ଯେ ଏ ଗାଁରୁ ସେ ଗାଁକୁ ଗଳ୍ପପତ୍ର ହସ, ଖୁସିରେ ଚାଳିଛନ୍ତି । ଭାଗିବ କାହିଁକି ?

ଆମ ଗାଁ ସାହୁ ମଉସାଙ୍କର ଟେଲିଫୋନ ଆଣିଲେଣି । ଆଉ କଣ ନମ୍ବର ବୁଲେଇ, ନମ୍ବର କହି କଥାହେଉଛି କି ? ସିଧାସଳଖ ବୁଲେଇ ଦେଲେ ଦିଲ୍ଲୀ, ମାଡ୍ରାସ୍, ବମ୍ବେ କଣ, ଆମେରିକାରେ ଥିବା ବନ୍ଧୁବାନ୍ଧବଙ୍କ ସହ କଥାଭାଷା କରି ହେଉଛି ।

ଗାଁର ଯାହାର ଭଲ ମନ୍ଦରେ ତାଙ୍କର ଘରକୁ ଫୋନ୍ ଆସିଲେ ଖବର ପାଉଛନ୍ତି । ସିଏ ତ କୋଉ ଦୂର ବିଦେଶକୁ ଫୋନ୍‌ରେ କଥା ଚଳେଇଛନ୍ତି । ହଁ, ପଇସା ପଡ଼ୁଛି ବେଶୀ— ହେଲେ ସୁବିଧା କେତେ । ସିଏ କହନ୍ତି ମୋର ଘରେ ଲୋକ ନ ଥିଲେ ବି ଦଶଲୋକର କାମ ଏଇ ଫୋନ କରୁଛି । ଆ ବି ଠିକ୍ । କୋଉଠି କଣ ଦରକାର ଅଛି ଲୋକ ପଠେଇବେ କାହିଁକି ? ଫୋନ କଲେ ହେଲା ।

ଫୋନ ଉପରେ ଗରମ ଆଲୋଚନା—ସମସ୍ତେ ଖସି ଗାଁକୁ ଫୋନ ଆଣିଛନ୍ତି । ସେତିକିବେଳେ ମୋତି ଗଉଡ଼ୁଣୀ କ୍ଷୀର ଧରି ଆସି ପହଞ୍ଚିଲା—କହିଲା ଶୁଣିଲଣିକି ? ସାହୁ ଭାଇକୁ ଘରକୁ କ୍ଷୀର ଦେଇ ଆସିଲି । ହଉ କ୍ଷୀର ଦେଇ ଆସିଲୁ ତ କଣ ହେଲା । ନାଇଁ ମ ହବ କଅଣ ? ଗୋଟାଏ କଣ ନାଲି

ରଙ୍ଗର ଯନ୍ତ୍ର ଥୁଆ ହେଉଛି । ଠାକୁର ଘଣ୍ଟି ପରି ଟିଂ, ଟିଂ ବାଜୁଛି । ସେ ବାଜଣା ଶୁଣି ମୁଁ ଛାଡ଼ୁବ । ତା ପରେ ଟେକିଧରି ଯନ୍ତ୍ରକୁ ଆଲୋ, ଆଲୋ କାହାକୁ କହୁଲେ କିଏ କହୁଲା କଣ ସେଥିରୁ ମତେ କି ମିଳିବ ।

ମୁଁ ତ ମାଆ ଅଦା ବେପାରୀ
ଜାହାଜ ମୂଲ କରିବି କାହିଁକି ?

ସମସ୍ତଙ୍କର ଠୋ, ଠୋ ହସ । ଅଗ୍ରି ଟାହୁଲେଇ କହୁଲା, ମୋତ ସେ ଯନ୍ତ୍ର ତଳେ ଆଲୋ, ଆଲୋ କହୁଥିବ ମ । ମୋତ ଲାଜରା ହେଇଗଲା । ଲୋକ ଯାଇ କୋଉଠି ଉଠିଲେଣି ଲୁ ଫୋନକୁ କହୁଛୁ ଠାକୁର ଘଣ୍ଟି । ଆଲୋ ଏଇ ଘଣ୍ଟି ବାଜଲେ ଯାହା ଘରେ ବାଜବ ସେ ଏପଟ ଲୋକ ସାଙ୍ଗେ କଥା ହେବ । ତୁ ଏଥର ଗୋଟିଏ ଫୋନ୍ ରଖ । ଆମର ଦରକାର ହେଲେ ଘଣ୍ଟି ବାଜବ । ତୁ କ୍ଷୀର ନେଇ ଆସିବୁ । ମୋର କି ହେବ ଫୋନ—ମୁଁ ଭଲ କି ମୋ କ୍ଷୀର ଠେକି ଭଲ । କଥା ପଢ଼ିଲା ବୋଲି କହୁଲି ନାଁ ।

ଆଲୋ ରଗୁଛୁ କାହିଁକି ? ଏଇ ବିଜ୍ଞାନ ଆମକୁ ଆଜ ନେଇ କୋଉଠି ଥୋଇଲାଣି । ଆମେ ଜାଣି ପାରୁନେ କଣ ସୁବିଧା ପାଉଛେ ।

ମୋତ ହସ, ହସ ହେଇ କହିଲା—ଆଲୋ ମୋ ଅଉ ଦେଖ ତ କଣ ଆସିଛି । କଣ ତମ ଖବର କହିଲ ଟିକେ ? ଭଲ ଭଲ, ଭଲ । ଶୁଣିଲୁ ? ତୋ ଫୋନ କଥା ମୁଁ ଶୁଣିଥିଲି ସୀତା ଦେଈଠୁ । ମୋତ ତୁ ସତ କହିଲୁ, ଆଜ କ୍ଷୀରରେ କେତେ ପାଣି ମିଶେଇଛୁ ?

କାହିଁ କଣ ହେଲା କି ? ନିରୁତା କ୍ଷୀର କଣ କିଏ ଦିଏ ? ଏଇ ନଖ ଟିପରେ ଟିପେ ମିଶେଇଛି । ସତ କହୁଛୁ ? ଟିପେ । କାହିଁକି ଭଲା ଦେଈ ମୋ ସହିତ ଝାପଟ ହେଉଛ ? ଅଲୋ ଝାପଟ ନାହିଁ, ଯନ୍ତ୍ର ଆଣିଛି ଦିଲ୍ଲୀରୁ- ତୁ କ୍ଷୀରରେ ପାଣି ମିଶଉଛୁ କି ନାହିଁ ଯନ୍ତ୍ରରୁ ଜାଣିହେବ । କେତେ ମିଶେଇଛୁ ତା ମଧ୍ୟ । ମୋତ ମୁହଁ ହଠାତ୍ କଇଁଥିଆ ପଡ଼ି ଆସିଲା । କଣ ମୋ ଦାନା ମାରିବ କି ?

ନେତ ପାଇଁ ଲାକ୍ଟୋମିଟରଟିଏ ଆଣିଥିଲା । ସାଙ୍ଗେ ସାଙ୍ଗେ ଆଉ ଲାକ୍ଟୋମିଟର ପକେଇ କହିଲା—ହଇଲୋ ତୁ ଆମକୁ ସବୁ ଏତେ ଠକୁଛୁ ? ସେଥିରେ ପୁଣି କେତେ କାମୁମ କରି ପକଉଲୋ ? ଆଖି କାହିଁକି ଟିକିଏ, ଟିକିଏ କଥାରେ ତୁଳେଁ କହୁଲୁ ? ପାଟି ଖନ ମାରିଗଲା ।

ନାଇଁମ ଦେଈ, ଘାସ ଖିଆ ଗାଈ ନା ସେଥିପାଇଁ ପାଣିଚିଆ କ୍ଷୀର । ମୋତ ସତ କହଲୋ,

ଆଉ କଣ ମିଛ କାହିଁ ହେବ । ଦେଖ ସବୁ ତହ ପାଣି ମିଶେଇଛି—ଏ ମହଙ୍ଗା ବଜାରକୁ ପାଣ ହେଉନ । ତମ ବେହେଇ କଣ କାଣନ୍ତି । ଏଇ ବାଟରେ ସେ ପୋଖରୀରୁ ମୁନ୍ଦେ ପାଣି ଆଣି ମିଶେଇଛି । ହେ ଦେଖ ଆଉ କେବେ ମିଶେଇବନି । ତମେ ତ ଯନ୍ତ୍ର ଆଣିଛ ଆମ ଦାନା ମାପିବାକୁ ।

ନାଇଁ ଲୋ, ମୁଁ କଣ ଦାନା ମାପିବାକୁ ଆଣିଛି, ଦେଖେ ବିଜ୍ଞାନର କରାମତି । ହଁ ତୁ ପାଣି ମିଶେଇଲୁ ପୁଣି ସେଇ ପୋଖରୀର ନାସନା ପାଣି । ସମସ୍ତେ ଆସ୍ତର ଯନ୍ତ୍ର ଦେଖି ଶୁଣି କାବା । ହଇଲେ ଏବେ ସବୁ ବାହାରିଲାଣି । ଧନ୍ୟ ଲୋ ତମେ ।

ମାଇପି ମହଲରେ ଚପା ଖିଲ ଖିଲ ହସ ମୁହଁରେ କାନ ଗୁଞ୍ଜି । ସେ ଘର ଉତ୍କଳ ପଡ଼ିଲା—କେହି ଦେଖି ନ ଥିଲେ, ଶୁଣିଥିଲେ ଏମିତି ଯନ୍ତ୍ରଟିଏ ଅଛି ଯେଉଁଥିରେ କ୍ଷୀରରେ ପାଣି ମିଶେଇବା ଜଣାପଡ଼େ ।

ଯାହା ନ ଦେଖିବ ନେତ୍ର ନୟନେ
ପରତେ ନ ଯିବ ଗୁରୁ ବଚନେ ।

ସେଦିନକବେଳେ ଇଲେକ୍‌ଟ୍ରିକ୍ ଲାଇନ୍ ଗ୍ଲଲଗଲା—ଟେବୁଲ ପଙ୍ଖା ବନ୍ଦ । ଗରମରେ ସମସ୍ତେ ଗମ୍ ଗମ୍ ଝାଳରେ ଉଦା । ଇଲେକ୍‌ଟ୍ରିକ୍ ଏମିତି ସୁବିଧା କରିଛି ଯେ ଘରେ ଆଉ

କଣ ହାତ ପଙ୍ଖା ଖଣ୍ଡେ ବ ରହୁଛି । ସମସ୍ତେ ଆରାମ ଖୋଜଲେଣି । ଖାଲି ଲୁଗା କାନି ବୁଲେଇବାରେ ଲାଗିଲେ ସଭିଏଁ ।

ତାପରେ ଲାଇନ୍ ଆସିଲା—ସମସ୍ତେ ଖୁସୀ । ସତେତ



ଏ ବିଜ୍ଞାନ ଆମକୁ କେତେ ଆରାମ ଦେଉଛି ଭଉଣୀ କହିଲ ? ଅଜାସୁଅ ଏ କରୁଛି ।

ତାଙ୍କର ଭିତରୁ ଜଣେ କହିଲେ—ଏବେ ମସଲାବଟା ଯନ୍ତ୍ର ଅଣ୍ଟିଛି ଯେ ପାଞ୍ଚ ମିନଟ୍‌ରେ ଡାଲି, ଚାଉଳ ସବୁ କାଟି




ହେଉଛି । ତାକୁ ମିକ୍‌ସ କହୁଛନ୍ତି । ଆଉ ତାଙ୍କ ଘରୁ ଶୀଳ, ଲୁହଣା ଉଠିଲାଣି ।

ଆଉ, ଦେଖୁନ ଆଉ କହିଲେ— ଅସଲ କଥା—ରେଡ଼ିଓ କେତେ ଖବର ଦଉଛି ତୁମମାନଙ୍କୁ । ନାଇତ ଆମେ ଘରେ ବସି ସାରା ଜଗତର ଖବର ଶୁଣୁଛେ । କେତେ ଭଲକଥା, ମଜା କଥା, ଛୁଆଁଙ୍କ ପାଇଁ, ଟୋକାଙ୍କ ପାଇଁ, ମହିଳା ମହଲ ସ୍ତ୍ରୀ ଲୋକଙ୍କ ପାଇଁ । ଗୀତ, ନାଟ,ବାଜା, ଦେହର ଯତ୍ନ, ଖାଦ୍ୟ

କଣ ଖାଇବ, କ ପାଣି ପିଇବ । ରୋଷେଇବାସଠାରୁ ଆରମ୍ଭ କରି ସଜେଇ, ବୁଣା, ବୁଣି ପର୍ଯ୍ୟନ୍ତ ଶିଖଉଛୁ ।

ଆଉ ସବୁଠୁ ମଜା ଖବର କଣ, ଜାଣ ପାଣିପାଗ ଆଗତୁରା ଜଣଉଛୁ—ମନେକର ତୁମେ ଖରା ବଡ଼ିରେଇଛ ବଡ଼ି ପାଇଁ । ବର୍ଷା ହେବ ଜାଣିଲେ ଥୋଇ ଦେବ ନା—ଆଉ କିଣ ବସିପାରିବ । ଯାହା ଘରେ ଫ୍ରିଜ୍ ଅଛି ସେ ତ ମଜାରେ କଞ୍ଚା ଖରା ବ ରଖିଦେବ ନ ହେଲେ ପିଠା ପଣା କରି ପକେଇ ଖାଇବ, ଲୋକସାନ କାହିଁକି କରିବ ବଡ଼ିପାଇଁ । ଆଲୋ ସତେ ତ ? ଏକା ସ୍ୱରରେ ସମସ୍ତେ କହିଲେ ।

କାହିଁକି ନା ଖବର ନ ଶୁଣି ଏମିତି କେତେଥର ବଡ଼ି ନଷ୍ଟ ହେଉଛି । ସତେ ମ ଆମେ ଏଇନେ ବିଜ୍ଞାନର ଦାସ; ଦାସୀ । ପୁଣି ହସର ଲହରୀ ।

ସୁନ୍ଦରୀ ଅପା କହିଲା—ଟି. ଭି. କଥା ଛାଡ଼ । କେଜାଣି ମତେ ସପନ ଦେଖିଲାପରି ଲାଗେ । କେମିତି ବା ଛବି ପୁଣି କଥା କହୁଛି । ଆଲୋ;

ଯାହା ନ ଦେଖିଛ, ନ ଶୁଣିଛ କାଳ କାଳେ
ଏବେ ଦେଖ ଶୁଣ ପାକଲି ବାଳେ ।

ଆଲୋ ସୁନ୍ଦରୀ ଅପା, ତୁ ପୁଣି ଆମର ଗୋଟିଏ କୋବ୍ୱ କେବେ ହେଲୁଣି କା ? ତୁମ ବଜ୍ଞାନ କରୁଛୁ ସବୁ ।



ଆଲୋ ଲତା ଦେଖିଲୁ କନ୍ତା ସିଇଁ, ସିଇଁ ମୋ ହାତରେ କେମିତ ଖଣ୍ଡି ହେଇଛୁ—ଏଇନେ ପ୍ରାୟ ଅଧିକାଂଶ ଗାଁରେ କନ୍ତା ସିଲେଇ ମେସିନ, ଭଲ ସଏଟର ବୁଣା ମେସିନ, ସିଲେଇ ମେସିନ୍ । କଣ ନାହିଁ କହିଲୁ ? ଆମ ଝିଅ ବୋହୂ ଆଉ କଣ ରେଡ଼ିମେଡ଼ ଜନଷକୁ ଅନେଇଛନ୍ତି ସେମାନେ ନିଜେ

ନିଜେ କେଡ଼େ ସୁନ୍ଦର ବୁଣି ପକଉଛନ୍ତି ମେସିନରେ । ଉଲ୍‌ର କଣ ନ କରୁଛନ୍ତି କହିଲୁ । ବାହାରୁ ବି ଲୋକ ବେଶ୍ ଅଡ଼ର




ଦେଉଛନ୍ତି । ଏବେ ପରା ସାହୁ ଝିଅମାନେ ତାଙ୍କ ହାତ ତିଆରି ଜିନିଷର ପ୍ରଦର୍ଶନୀ କରୁଥିଲେ । ନାମ୍ କାଟତି ହେଉଛି ।

ଦୋକାନରେ ବନ୍ଦିଚଷ୍ଠା କରି ବେଶ୍ ଦି ପଇସା ରୋଜଗାର ବି ହେଉଛି ।

ହରି ନାହାକ ବୋହୂ ଫୁଲ, ଯାହା ଗେରସ୍ତ ଆରସନ ମରିଗଲା ସେ ବର୍ଷ୍ଟରୀ ସିଲେଇ ମେସିନ୍ ପକେଇ ବାପଛେଉଣ୍ଡ ଦୁଇଟି ପିଲାଙ୍କୁ ଚଳେଇ ନେଲା । ଖାଲି ସେତିକି, ଆରାମରେ ଘର ଚଳଉଛି । କେହିତ ଆଉ କହୁନ ଯେ ମୁଁ ପୋଷିଲି, ମୁଁ ସାହାଯ୍ୟ କଲି । ହଉ ଭଗବାନେ ସମସ୍ତଙ୍କର ମଙ୍ଗଳ କରନ୍ତୁ । ଆଗବେଳ ହେଇଥିଲେ ଛତରରେ ପଶନ୍ତେଣି । ସଭେଲେ ମେସିନ୍ ବାହାରିଲା ବୋଲି ଆମର ଏଡ଼େ ସୁବିଧା ।

ଲୋକ ତାଙ୍କ ବୁଦ୍ଧି ବଳରେ କେତେ କଣ ତିଆରି କରି ପକଉଛନ୍ତି । ଟାଇପ୍ ମେସିନ୍—କେଡ଼େ ଶୀଘ୍ର ସବୁ ଓଡ଼ିଆ, ଇଂଲିଶ ଲେଖିହେଇ ଯାଉଛି ।

କେତେ କଳକାରଖାନା, ଲୁଗାମିଲ୍ ସବୁ ମଣିଷଙ୍କ ସୁବିଧା ପାଇଁ ବସିଛି—ଲୋକେ ବି ପୋଷି ହେଉଛନ୍ତି ।

ଛାପାଖାନା, କେତେ ବହି କରୁଛି କହିଲ ଦେଖି । ହାତରେ ଭଲ କିଏ ଲେଖିପାରନ୍ତା । ନେଡ଼ବୋଉ ପାନ

ଖିଲଟିଏ ପାଟିରେ ପୂରେଇ କହୁଲେ—ଆମେ ଆଗବେଳେ ଆମେ ବାଇସ୍କୋପ ଦେଖୁଥିଲୁ । ଖାଲି ଛବି ଲୋ, କଥା ନାଁ



ପଥା—ସେଇଥିରେ ତ କେତେ ଦଉଡ଼ । ଏବେ ତ ସିନେମା ପୁଣି ସିନେମା ପରେ ସିନେମା । ଚନ୍ଦ ଦେଖିବ—ଥଣ୍ଡାଘରେ ବସିବ । ଝାଳ ଟୋପାଏ ବାହାରିବନି । ଗାଁ ଗାଁରେ ସିନେମା ଦେଖାହେଲାଣି । ଛାଡ଼ ଲୋକଙ୍କ ସୁଖକୁ ଏ ବଜ୍ଞାନ ଯେମିତି ଚହିଁ ବସିଛି ।

ଆଉ ମଣିଷ ହାତକୁ କିଏ ଅନେଇଛି କହିଲ ? ସବୁ ତ ବିଜ୍ଞାନ ସୁବିଧା କଲା— ସବୁଠୁ ବେଶୀ ସୁବିଧା ଏଇ ବିଜୁଳୀ ଶକ୍ତି—ଡିବିରି, ମହମବତୀ, କରଞ୍ଜତେଲର ଦୀପ, ଲଣ୍ଠନ ଗାଁ ଲୋକେ ଭୁଲିବାକୁ ବସିଲେଣି । ଏଇନେ ହାତ ସିଧା



ଯାଉଛି ସ୍ୱିଚ ବୋର୍ଡ଼ ପାଖକୁ । ଏଇ ଆଲୁଅ ଅଉ ଅମେଇଁସାର କଳା ଧୂମର ରାତି ଲୁଚେଇଲାଣି । ବଡ଼ ବଡ଼ ସହରରେ ପନେଇ କରିଛି ବିଜୁଳୀ ଆଲୁଅ ।

ଇଲେକ୍‌ଟ୍ରିକ୍‌ରେ ଜଳୁଛି ଚୁଲୀ -ଅଜକାଲ ଅଗପର କଣ କୋଇଲା ଇସ୍ତ୍ରୀ ଦେଖିବାକୁ ମିଳୁଛି । ସବୁଘରେ ଲୋ ମା ଇଲେକ୍‌ଟ୍ରିକ୍ ଇସ୍ତ୍ରୀ—କେଡ଼େ ସୁବିଧା ।

ଏଇ ଯୋଉ ଥଣ୍ଡା ଯନ୍ତ୍ର—ଫ୍ରିଜ୍ ତା କେଡ଼େ ସୁବିଧା କରିଛି । ଖାଇବା ଜିନିଷ ବାହାରେ ରହି ଯେମିତି ପଚି, ସଡ଼ି ନଷ୍ଟ ହେଉଥିଲା ଏବେ କଣ ସେମିତି ହେଉଛି—ଫ୍ରିଜ୍‌ରେ କେଡ଼େ ସୁନ୍ଦର ରନ୍ଧା ଜିନିଷ, କଞ୍ଚା ଜିନିଷ, କଞ୍ଚା ମାଂସ, ମାଛ ବରଫ ହେଉଥିବା ଡିପ୍‌ଫ୍ରିଜ୍‌ରେ ରଖାଯାଉଛି । ଅନେକ ଦିନ ରହିବ—ଟାଟକା ମଧ୍ୟ ରହିବ । ଏମିତିକି ମୂଲ୍ୟବାନ୍ ଜୀବନ ରକ୍ଷାକାରୀ ଔଷଧପତ୍ର ମଧ୍ୟ ରଖାଯାଇ ପାରୁଛି ।

ସମସ୍ତେ ଏକ ସ୍ୱରରେ କହିଉଠିଲେ ଗ୍ରାମ ମହିଳା ସମିତି ତରଫରୁ ଗୋଟିଏ ଫ୍ରିଜ୍ କିଣି ସମିତି ଘରେ ରଖିବା— ସମସ୍ତଙ୍କର କାମରେ ଆସିବ ।

ହଁ, ବଢ଼ିଆ କଥା କହିଲ ଅପା, ତେବେ ମନେକର କଣକର ପଇସା ଅଛି ଅଯଥା ସୁନା ନ କିଣି ଏଇ ଦରକାର ଜିନିଷରୁ ଗୋଟିଏ କିଣିଲେ କେଡ଼େ ସୁବିଧା ହେବ ।

ସୀତା, ଆଉ ଏ ଦୁଇଟି ଝିଅ ଆମ ଗାଁର ନାଁ ରଖିବେ । ଦେଖୁନ କେଡ଼େ ସୁନ୍ଦର ଥଟ୍ଟାରେ ଥଟ୍ଟାରେ କେତେ କଥା ବୁଝେଇଦେଲେ । ତେବେ ମୋଟା ଗଉଡୁଣୀ ମନଟା ଖଟ୍ଟା କରିଦେଲେ । ସଞ୍ଜ ହୋଇ ଆସିଲା—ଗୋଟିଏ, ଗୋଟିଏ ଉଠିଲେ ସଞ୍ଜବତୀ ଲଗେଇବା ପାଇଁ ।

